# ଜୀବନଠୁ ବଳି ବଂଧୁ

ଏଡ଼ିଥ୍ ପାର୍ଗେଟର




ଖୁସିରେ ପଢ଼ିବା ଅଭିଯାନ

ଭାରତ ଜ୍ଞାନ ବିଜ୍ଞାନ ସମିତି

# ଜୀବନରୁ ବଳି ବନ୍ଧୁ


ଲେଖକ ଏଡ଼ିଥ୍ ପାର୍ଗେଟର୍

ଅନୁରଚନା ବିନୟକୃଷ୍ଣ ପଟ୍ଟନାୟକ

ଅଙ୍କନ ଅସିତ୍ ଦାସ

ପ୍ରକାଶକ ଭାରତ ଜ୍ଞାନ ବିଜ୍ଞାନ ସମିତି,

ସି-୨, ହାଉସିଂ ବୋର୍ଡ଼ କଲୋନୀ,

ବରମୁଣ୍ଡା, ଭୁବନେଶ୍ୱର - ୭୫୧ ୦୦୩

ଫୋନ୍ : (୦୬୭୪) ୪୭୦୮୯୧

ଅକ୍ଷରସଜ୍ଜା ପାୟୋନିୟର କମ୍ପ୍ୟୁଟର ସର୍ଭିସେସ୍

ଭୁବନେଶ୍ୱର

ମୁଦ୍ରଣ କୋଣାର୍କ ପ୍ରିଣ୍ଟର୍ସ

ମୂଲ୍ୟ ତିନି ଟଙ୍କା ମାତ୍ର

ପ୍ରକାଶ କାଳ ଜାନୁଆରୀ ପହିଲା ୧୯୯୭


*ଏହି ପୁସ୍ତିକାଟି ଓଡ଼ିଶାରେ 'ଖୁସିରେ ପଢ଼ିବା ଅଭିଯାନ' (Jan Vachan Andolan) ପାଇଁ ପ୍ରସ୍ତୁତ କରାଯାଇଛି । ଲୋକଙ୍କ ମଧ୍ୟରେ ପଠନ ପ୍ରତି ରୁଚି ବଢ଼ାଇବା ଓ ଗାଁ ଗହଳିରେ ଏକ ପାଠାଗାର ଅଭିଯାନ କରିବା ପାଇଁ ସମିତି ତରଫରୁ ଏହା ଏକ ଦେଶବ୍ୟାପୀ ଉଦ୍ୟମ ।*


* A grain of mustard seed * Writer - Edith Pargetor
* Transcreation - Binaya Krushna Pattanayak * Illustrator - Asit Das
* Published by - B.G.V.S., Orissa for Jan Vachan Andolan
* Price - Rs. 3.00 * Publication period - 1st January 1997

**ସେ**ତେବେଳେ ଆମେ ଲାହୋରରେ ରହୁଥିଲୁ । ମୁଁ ବେଶ୍ ଛୋଟ ଥିଲି । ବାପାଙ୍କର ଅନେକ ସାଙ୍ଗ ସାଥି ଘରକୁ ଆସୁଥିଲେ । ସେମାନଙ୍କ ଭିତରେ ଜଣେ ଥିଲେ-ମହମ୍ମଦ ଇକ୍‌ବାଲ୍ । ସେ ଥିଲେ ଜଣେ ମୁସଲମାନ- ବାପାଙ୍କର ଅତି ନିକଟ ବନ୍ଧୁ । ତାଙ୍କ ପେଶା ଥିଲା ଜୋତା ମରାମତି । ଖୁବ ଅଭାବରେ ଚଳୁଥିଲେ । ଗରାଖମାନଙ୍କ ଜୋତା ମରାମତିରୁ ସେ ବା କେତେ ପଇସା ପାଉଥିବେ ! ଧାର ଉଧାର କରି କଷ୍ଟେ ମଷ୍ଟେ ଚଳୁଥାନ୍ତି । ଋଣ ବୋଝ ସବୁବେଳେ ବଢ଼ିଚାଲିଥାଏ ।

ମୋ ବାପା ତାଙ୍କୁ ଏଥିରେ କିଛି ସହଯୋଗ କଲେ । ତାଙ୍କ ଜଣାଶୁଣା ବନ୍ଧୁଙ୍କ ଆଡୁ ଇକ୍‌ବାଲଙ୍କୁ କିଛି କାମ ଯୋଗାଇଲେ । ଏଥିରୁ ସେ କିଛି ପଇସା



କମାଇଲେ । ଋଣ ବି ଧୀରେ ଧୀରେ ଶୁଝି ଚାଲିଲେ । କ୍ରମେ ସେ ଋଣ ଭାରରୁ ପୂରାପୂରି ମୁକୁଳି ଗଲେ । ଏଥର ସେ ଅଳ୍ପ ଅଳ୍ପ କରି ସଞ୍ଚିବାକୁ ଆରମ୍ଭ କଲେ । ତାଙ୍କ ଘରଟି ବେଶ୍ ଛୋଟ ଥିଲା । ଏଥିରେ ଦାଣ୍ଡ ଘରଟି ଆହୁରି ଛୋଟ ଥିଲା । ଏହାର ଅଧାକରେ ସେ ତାଙ୍କ ଛୋଟ ଜୋତା ଦୋକାନଟି ଚଳାଉଥିଲେ । ତାଙ୍କର ସ୍ୱପ୍ନ ଥିଲା ଦିନେ ସହରର ମୁଖ୍ୟ ବଜାରରେ ସୁନ୍ଦର ଜୋତା ଦୋକାନଟିଏ ଖୋଲିବେ ।

ଏ ସମୟଟି ଦେଶର ଏକ ଘଡ଼ିସନ୍ଧି ସମୟ ଥିଲା । ହଠାତ୍ ଶୁଣିବାକୁ ମିଳିଲା, ଭାରତ ଦୁଇଭାଗ ହୋଇଯିବ । ହିନ୍ଦୁ ଓ ମୁସଲମାନ ଆଉ ଭାଇ ଭାଇ ରହିବେ ନାହିଁ । କଥାଟି ସତ ହୋଇଗଲା । କ୍ରମେ ଦୁଇ ସାଥି-ଜାତି ମଝିରେ ଏକ ପାଚେରୀ ଠିଆ ହୋଇଗଲା । ଦେଶ ଭିତରେ ଲଢ଼େଇ ଚାଲିଲା । ସେତେବେଳକୁ ଇକ୍‌ବଲ୍ ପ୍ରାୟ ପନ୍ଦର ଶହ ଟଙ୍କା ସଞ୍ଚି ପାରିଥାନ୍ତି । ଥରେ ସେ ବାପାଙ୍କୁ ଏହା କହିଥିଲେ ।

ବାପା ଓ ସେ କେବଳ ସାଙ୍ଗ ନ ଥିଲେ । ଦୁହିଁଙ୍କ ଚେହେରାରେ ବି ଯଥେଷ୍ଟ ମେଳ ରହିଥିଲା । ଉଭୟେ ସଫା ରଙ୍ଗର ଥିଲେ । ପତଳା ଓ ଚଞ୍ଚଳ ବି ଥିଲେ । ବାପା ଅପେକ୍ଷାକୃତ ହାଡୁଆ ଓ ହାଲୁକା ଥିଲେ । କିନ୍ତୁ ଇକ୍‌ବାଲ୍‌ଙ୍କ ପତଳା ଦେହର ମାଂସପେଶୀଗୁଡ଼ିକ ଚମଡ଼ା ପରି ଶକ୍ତ ଥିଲା । ବାପା ସୁନା ବେପାର କରୁଥିଲେ ।

ଦୁଇ ବନ୍ଧୁ ବସି ଚେସ୍ ଖେଳିବାକୁ ଖୁବ୍ ଭଲ ପାଉଥିଲେ । ସପ୍ତାହରେ ଯେମିତି ହେଲେ ଦୁଇ ତିନି ଥର ଖେଳିବାକୁ ବସୁଥିଲେ । ଆମ ଦୋକାନ ଘରେ ଅନେକ ବେଳ ଯାଏଁ ଖେଳ ଚାଲୁଥିଲା । ଖେଳିଲାବେଳେ ଦୁହେଁ ବେଶ୍ ଖୁସି ଜଣା ପଡୁଥିଲେ । ସେତିକିବେଳେ କୌଣସି କଥା ତାଙ୍କ ମୁଣ୍ଡରେ ପଶୁ ନ ଥିଲା ।

ମୋ ବାପା ବେଶ୍ ଆତ୍ମବିଶ୍ୱାସୀ ଥିଲେ । ସେ ମୋତେ ଶିଖାଉଥିଲେ ଯେ, ଈଶ୍ୱର ସବୁଠାରେ ଅଛନ୍ତି । ସଭିଙ୍କୁ ସେ ଏକା ଆଖିରେ ଦେଖନ୍ତି । ମୋ

ଭିତରେ ସେ ଏହି ବିଶ୍ୱାସ ଆଣି ଦେଇଥିଲେ । ବାପାଙ୍କ ପ୍ରତି ମୋର ଯଥେଷ୍ଟ ସମ୍ମାନ ଓ ଅନ୍ତରଙ୍ଗତା ଥିଲା । ଏହା ସହିତ ସମତାଳରେ ଈଶ୍ୱରଙ୍କ ପ୍ରତି ମୋର ଗଭୀର ବିଶ୍ୱାସ ବି ବଢ଼ି ଯାଇଥିଲା ।

ହଠାତ୍ ଲାହୋର ଆକାଶରେ କଳାମେଘ ଛାଇଗଲା । ଏପରି କାହିଁକି ହେଲା, ତାହା ମୁଁ ବୁଝାଇପାରିବି ନାହିଁ । କିନ୍ତୁ ସବୁଆଡ଼େ ଆତଙ୍କବାଦ, ଲୁଟତରାଜ ଓ ଦଙ୍ଗା ବଢ଼ିବାରେ ଲାଗିଲା । ସାରା ସହରଟି ଏହାର ପ୍ରକୋପରେ ଜଳୁଥାଏ । ଗଳି ଉପଗଳିରେ ପ୍ରତି ମୁହୂର୍ତ୍ତରେ କିଛି ନା କିଛି ଘଟୁଥାଏ । ହଣାକଟା, ଆଦି ନାନା ଅମାନୁଷିକ ଘଟଣାରେ ଶହ ଶହ ଶବ ଗଡ଼ୁଥାଏ । କ୍ରମଶଃ ଅବସ୍ଥା ଭୟାଭୟ ହୋଇପଡ଼ିଲା । ଆମେ ଆମ ଘରର ଦୁଆର ବାଡ଼ ଟପି ବାହାରି ବି ପାରିବ ନାହିଁ ।



ବହୁତ-ଭୟ ଲାଗୁଥାଏ । ଆମ ଦୋକାନ ଲୁଟ ହୋଇଗଲା । ସେମାନେ ତାକୁ ଜାଳି ପାଉଁଶ କରିଦେଲେ । ଏମିତିକି ଦିନେ ଆମ ଘରଟି ବି ସେଥିରୁ ବାଦ ପଡ଼ିଲା ନାହିଁ । ଭଗବାନଙ୍କ ଦୟାରୁ ଏହା ପୂରା ପାଉଁଶ ହୋଇ ନଥିଲା । ଏହାର ଦରପୋଡ଼ା ଛାତଟି ହିଁ ଆମକୁ ଆଶ୍ରୟ ଯୋଗାଇଲା । ଆମେ ଆଉ ବା କଣ କରୁ ? ଭାରତକୁ ଫେରିଆସିବା ଛଡ଼ା ଆମର ଅନ୍ୟ କିଛି ଚାରା ନଥିଲା । କିନ୍ତୁ ଲାହୋର ଯେ ଆଉ ଆମ ଦେଶର ଅଂଶ ନୁହେଁ; ଏହା ହିନ୍ଦୁସ୍ଥାନର ନ ରହି ପାକିସ୍ଥାନର ହୋଇଯାଇଛି- ଏ କଥା ଆମ ମୁଣ୍ଡକୁ ଢୁକୁ ନଥିଲା ।

ଏଣେ ଦୁଃଖ ଓ ଅସହାୟତା, ତେଣେ ନିରାପତ୍ତା ସମ୍ପୂର୍ଣ୍ଣ ବିପର୍ଯ୍ୟସ୍ତ । ଆମେ ବୁଝି ପାରୁ ନଥିଲୁ, ଏସବୁ କାହିଁକି କିପରି ଘଟିଯାଉଥିଲା । ଆମ ଭିତରେ ସବୁଠୁ ବେଶୀ ଚାପ ଓ କ୍ଷତିର ଶିକାର ହୋଇଥିଲେ ବାପା । ମଣିଷ ଓ ଈଶ୍ୱରଙ୍କ ଉପରେ ତାଙ୍କର ଯେଉଁ ଗଭୀର ଆସ୍ଥା ଓ ବିଶ୍ୱାସ ଥିଲା, ତାହା ଏକ ପ୍ରଚଣ୍ଡ ଆଘାତ ପାଇଥିଲା । ସେ ବିଶ୍ୱାସ କରି ପାରୁ ନଥିଲେ ଯେ, ଏ ସବୁ ନାରକୀୟ କାଣ୍ଡ ଥମିବ ଓ ଶାନ୍ତି, ସୁଖ ପୁଣି ଫେରି ଆସିବ ।

ଦଙ୍ଗା ଅଧିକ ବଢ଼ିଲା । ଶହ ଶହ ଲୋକ ଧନଜୀବନ ହରାଇ ନିଃସ୍ୱ, ନିଃସହାୟ ହୋଇ ପଡୁଥିଲେ । ଏ ସବୁକୁ ଦେଖିବା ସାଙ୍ଗକୁ ଆମ ଆଗରେ ଦୁଇଟି ବାଟ ଜଳ ଜଳ ହୋଇ ଦିଶୁ ଥିଲା । ଆମେ ସେହି ଜାଗାକୁ ଛାଡ଼ି ଭାରତକୁ ଫେରିଆସିବୁ ବା ଦଙ୍ଗାରେ ବଳୀ ପଡ଼ିବୁ । ଏହା ଛଡ଼ା ତୃତୀୟ ପନ୍ଥା କ'ଣ ବା' ହୋଇପାରେ ?

ଆଗରୁ ଯିଏ ସବୁ ଲାହୋର ଛାଡ଼ି ଚାଲି ଆସିଥିଲେ, ସେମାନେ ସତରେ କେତେ ଭାଗ୍ୟବାନ ଥିଲେ ! ସାଙ୍ଗରେ ସେମାନେ ନିଜର କଷ୍ଟୋପାର୍ଜିତ ସମ୍ପତ୍ତିରୁ ଯାହା ପାରିଲେ ନେଇ ଯାଇଥିଲେ । ଆମେ ଏବେ ଫେରି ଆସିବାକୁ ଚାହୁଁଥିଲୁ । କିନ୍ତୁ ଆମର ସବୁ ଧନ ସମ୍ପତ୍ତି ଜଳି ପୋଡ଼ି ପାଉଁଶ ହୋଇ ଯାଇଥିଲା । ଦେହ ଲାଜ ଲୁଚାଇବା ପାଇଁ କେଇ ଖଣ୍ଡ ଲୁଗା



ଛଡ଼ା ଆମର ଆଉ କିଛି ବି ନ ଥିଲା । ପୁଣି ସେତେବେଳକୁ ଦେଶର ଅବସ୍ଥା ସାଙ୍ଘାତିକ ହୋଇଯାଇଥିଲା । ତେଣୁ ଏସବୁକୁ ଧରି ଦେଶକୁ ଆମେ ଯେ ଅକ୍ଷତ ଅବସ୍ଥାରେ ଫେରି ପାରିବୁ- ସେହି ଆଶା ଆମେ ହରାଇ ବସିଥିଲୁ । ଏ ସମୟରେ ଆମେ ଶୁଣିଲୁ- ଆଗକୁ ଦିନେ ଗୋଟିଏ ଟ୍ରେନ ଲାହୋର ଛାଡ଼ିବ । ଆମେ ହୁଏତ ସେଥିରେ ହିଁ ଫେରିବୁ । ସରକାର ନିର୍ଦ୍ଦେଶ ଦେଲେ, ଯିବାବେଳେ କେହି କୌଣସି ମୂଲ୍ୟବାନ ଜିନିଷ ସାଥିରେ ନେଇପାରିବେ ନାହିଁ । ମଣିଷର ଜୀବନ ଯେଉଁଠି ସଙ୍କଟମୟ, ସେତେବେଳେ ଧନସମ୍ପତ୍ତି ବା କଣ ହେବ !

ସେ ଦିନ ସକାଳ । ଆମର ଲାହୋର ରହଣୀ ସରିଲା । ଆମେ ପ୍ରିୟ ଭିଟା ମାଟି ଛାଡ଼ି ଷ୍ଟେସନ୍‌କୁ ମୁହାଁଇଲୁ । ମନରେ ଅନେକ ଚିନ୍ତା - ଆମେ କେମିତି ଟ୍ରେନ ଧରିବୁ ? ଘରୁ ସିନା ବାହାରି ଆସିଲୁ । ବାହାରର ଦୃଶ୍ୟ କି ସାଙ୍ଘାତିକ ! ଦୁନିଆର ଅସଲ ଚେହେରା ଦେଖି ଆମେ ହତବାକ ହୋଇଗଲୁ ।

ଚାରିଆଡ଼େ ଧ୍ୱଂସ ଓ ଅରାଜକତାର ତାଣ୍ଡବଲୀଳା ଚାଲିଥାଏ । ସବୁଠୁ ଦୁଃଖ ଓ ପରିତାପର ବିଷୟ ଥିଲା - କାଲିଯାଏଁ ଯେଉଁମାନେ ଆମର ବନ୍ଧୁ ଓ ପଡ଼ୋଶୀ ଥିଲେ, ସେମାନେ ଏବେ ପୂରା ବଦଳି ଯାଇଥିଲେ । ସେମାନେ ଆଜି ଉଚ୍ଚ ସ୍ୱରରେ ଚିତ୍କାର କରି ଆମକୁ ଗାଳି କରୁଥିଲେ । କେହି କେହି ଥୁ' ଥୁ' କରି ଛେପ ପକାଇ ନିଜର ରାଗ ପ୍ରକାଶ କରୁଥିଲେ ।

କିଛି ଲୋକ ତ ରାଗରେ ଅନ୍ଧ ହୋଇ ଯାଇଥିଲେ । ସେମାନେ ଆମ ଉପରକୁ ଢେଲା ପଥର ବି ଫିଙ୍ଗିବାକୁ ବାହାରି ଆସିଥିଲେ । ସେମାନେ ନିଜକୁ ମଣିଷ ବୋଲି ଭୁଲି ସାରିଥିଲେ । ଯୁଆଡ଼େ ଚାହିଁଲେ ବି ମାଳ ମାଳ ମୁସଲମାନ ଦେଖା ଯାଉଥିଲେ । ସେମାନଙ୍କ ଆଖିରେ ଆଉ ଆଗର ସ୍ନେହ, ଆଦର ଓ ଭ୍ରାତୃତ୍ୱ ନ ଥିଲା । ଏବେ ସମସ୍ତଙ୍କ ମୁହଁରେ କେବଳ ଘୃଣା ଓ ପ୍ରଚଣ୍ଡ କ୍ରୋଧ ଦେଖିବାକୁ ମିଳୁଥିଲା ।



ଦିନ କେତେଟାରେ ଆମେ ଯେପରି ବନି ଯାଇଥିଲୁ ତାଙ୍କର ପରମ ଶତ୍ରୁ ! ଆମେ ତାଙ୍କ ପାଇଁ ଏବେ ବିଦେଶୀ ହୋଇଯାଇଥିଲୁ । ଏ ସବୁ କଥା ମୁଁ ପରେ ମା'ଙ୍କ ଠାରୁ ଶୁଣିଛି । ଏହି ଘଟଣା ବାପାଙ୍କ ମନରେ ଗଭୀର ଗାର ଟାଣି ଦେଇଥିଲା । ଆଗରୁ ମାନବିକତା, ସତ୍‌ଚିନ୍ତା, ସତ୍‌କର୍ମ ଆଦି ଉପରେ ତାଙ୍କର ଗଭୀର ଆସ୍ଥା ଥିଲା । କିନ୍ତୁ ଏହି ଘଟଣାଗୁଡ଼ିକ ତାଙ୍କ ମନ ଓ ବିଚାରରେ ଗଭୀର କ୍ଷତ ସୃଷ୍ଟି କରିଥିଲା ।

ଏହା ବେଶ୍ ଗହିରିଆ ଓ ଅପୂରଣୀୟ ଥିଲା । ବର୍ଷ ବର୍ଷର ବିଶ୍ୱାସ ଓ ବନ୍ଧୁତ୍ୱ ଆଜି ପୂରା ଉଜୁଡ଼ି ଯାଉଥିଲା । ନିଜର ଅତି ନିକଟ ବନ୍ଧୁମାନଙ୍କର ଏପରି ବ୍ୟବହାର ଦେଖି ସେ ନିଜର ମାନସିକ ଭାରସାମ୍ୟ ହରାଇ ସାରିଥାନ୍ତି । କୌଣସି ମତେ ଆମେ ଜୀବନ ଧରି ଷ୍ଟେସନରେ ପହଞ୍ଚିଲୁ । ପ୍ରତି ପାଦରେ ବିପଦରେ ମନ ଥରି ଯାଉଥାଏ ।



ହଠାତ୍ ଦଳେ ଲୋକ ପୋଲିସ୍ ଘେର ଟପି ଆମ ଆଡ଼କୁ ଖେଦି ଆସିଲେ । ପ୍ରାଣ ଭୟରେ ଆମେ ବରଡ଼ା ପତ୍ର ପରି ଥରୁଥାଉଁ । କିନ୍ତୁ କି ଅସମ୍ଭବ କଥା ! ସେ ଦଳଟି ଭିତରେ ହଠାତ୍ ମତେ ମହଦର୍ ଇକ୍‌ବାଲ୍‌ଙ୍କ ମୁହଁଟି ଦିଶିଗଲା । ଅନେକ ଦିନ ଧରି ଏହା ମଧ୍ୟରେ ମୁଁ ତାଙ୍କୁ ଦେଖି ପାରି ନଥିଲି । ଏହି ପରିସ୍ଥିତିରେ ତାଙ୍କୁ ଦେଖି ମୋ ମନରେ ଜୀବନ ଓ ସୁରକ୍ଷାର ଆଶା ଜାଗି ଉଠିଲା ।

ଏହି ବିପଦସଙ୍କୁଳ, ଅସମୟରେ ଅନ୍ତତଃ ନିଜର ଜଣେ ପାଖରେ ପହଞ୍ଚିଯାଇଛି ! ଏବେ ଅନ୍ତତଃ ବାପା ନିଜର ମାନସିକ ଭାର ସମ୍ଭାଳି ନେବାକୁ କିଛିଟା ବଳ ପାଇ ପାରିବେ । ଏ ଯାଏଁ ସେ ବିଶ୍ୱାସର ମୂଳଦୁଆ ଉପରେ ଠିଆ ହୋଇ ଚାଲିଥିଲେ । କିନ୍ତୁ ଆଜି ସେ ଟଳମଳ ହେବାକୁ ଆରମ୍ଭ କରିଥାନ୍ତି । ଆଜି ଇକ୍‌ବାଲ୍‌ଙ୍କୁ ପାଖରେ ଦେଖି ସେ ନିଶ୍ଚୟ ଖୁସି ହୋଇପାରିବେ । ଏହା ହୁଏତ ତାଙ୍କୁ ଶାନ୍ତ ଓ ସ୍ଥିର ଅବସ୍ଥାକୁ ଫେରାଇ ଆଣିପାରିବ । ମୁଁ ଏହି ଆଶାରେ ତାଙ୍କୁ ଅନେଇ ରହିଥାଏ ।

କିନ୍ତୁ ଘଟଣାଟି ଏକ ବିଚିତ୍ର ମୋଡ଼ ନେଲା । ମହଦର୍ ଇକ୍‌ବାଲ୍ ଗହଳି ଠେଲି ଠେଲି ଝପଟି ଆସିଲେ । ସିଧା ବାପାଙ୍କ ପାଖରେ ପହଞ୍ଚି ବାପାଙ୍କ ଦୁଇ କାନ୍ଧକୁ ହାତରେ ଚାପି ଧରିଲେ । ଏତେ ହିଂସ୍ର ଭାବରେ ଝାଙ୍କି ଦେଲେ ଯେ, କ୍ଷଣକ ପାଇଁ ଆମେ ସମସ୍ତେ ଅବାକ୍ ହୋଇଗଲୁ । ସେ ଗର୍ଜନ କରି କହିଲେ, ''ହିନ୍ଦୁ କୁତ୍ତା ! ପକେଟ୍‌ରେ କ'ଣ ପୂରାଇଛୁ ? କ'ଣ ନେଇ ଯାଉଛୁ ଦେଖେ ?''

ଏମିତି କହି କହି ସେ ବାପାଙ୍କ ଦି ପକେଟ୍‌ରେ ହାତକୁ ଭରିଦେଲେ । ସେଥିରେ ଥିବା ଜିନିଷ ସବୁକୁ ଗୋଟି ଗୋଟି କରି ବାହାର କରି ଆଣିଲେ । ବାପାଙ୍କର ରୁମାଲ ଓ ଚଷମା ଖୋଳକୁ ସିନା ଛାଡ଼ି ଦେଲେ । କିନ୍ତୁ ତାଙ୍କ ସାରା ଜୀବନର ସାଇତା ଶ୍ରଦ୍ଧା ଓ ବିଶ୍ୱାସ ପୁଞ୍ଜିକୁ ବି ବାପାଙ୍କ ଠାରୁ ଅଲଗା କରି ଦେଲେ । ବାପା ସେତେବେଳକୁ ଅଚଳ ଅବାକ୍ । ଦେହଟା ଜଡ଼

ହୋଇଯିବା ସାଙ୍ଗକୁ ତାଙ୍କ ଆଖି ଦୁଇଟାରେ ବି ଚମକ ହଜିଯାଉଥିଲା । ଦିନେ ସେ ଥିଲେ ତାଙ୍କର ଘନିଷ୍ଠ ବନ୍ଧୁ । ତାଙ୍କ ସହ ସେ ଜୀବନର ଯାବତୀୟ ଦୁଃଖସୁଖ ବାଣ୍ଟିଚାଲିଥିଲେ । ଅଥଚ ଆଜି ? ଆଜି ସେହି ପରମ ବନ୍ଧୁ ତାଙ୍କ ଠାରୁ ଉତାରି ନେଉଥିଲେ ଗୋଟିଏ ପରେ ଗୋଟିଏ ଡାବ । ଏହି ଡାବ ଥିଲା ବନ୍ଧୁତା, ବିଶ୍ୱାସ ଓ ମାନବିକତାର ଗଭୀର ଭାବ । ନିଜ ଆଖିରେ ବାପା ଏବେ ହୋଇଯାଉଥିଲେ ପୂରାପୂରି ବିବସ୍ତ୍ର । ତଥାପି ସେ ବନ୍ଧୁ ମହେନ୍ଦ୍ର ଭାକ୍ବଲଙ୍କ ଶେଷ ଇଚ୍ଛା ପୂରଣ ହେବାରେ ଅଳପ ଟିକିଏ ବି ପ୍ରତିବାଦ କରୁ ନଥିଲେ ।

''ଯା'...ଯା'...! ଗଲାବେଳେ ସାଙ୍ଗରେ ମୁଣାଏ ମଇଳା ନେଇ ଯା' । ଘରକୁ ଯାଉଛୁ ପରା ।'' ସେ ଚିତ୍କାର କରୁଥାନ୍ତି । ଏଥି ସହ ବାପାଙ୍କୁ ସେ ଏପରି ଜୋର୍‌ରେ ଠେଲି ଦେଲେ ଯେ, ବାପା ଛିଟିକି ପଡ଼ିଲେ ପ୍ଲାଟଫର୍ମରୁ ସିଧା ରେଳ ବଗି ଭିତରକୁ ସେ ପଶିଗଲେ । ଯଦୁ ପଦୁ କୌଣସି ମତେ ନିଜକୁ ସମ୍ଭାଳି ନେଲେ ।



ମା'ର ଅବସ୍ଥା ସେତେବେଳକୁ ସାଙ୍ଘାତିକ । ସେ ଏହି ପରିସ୍ଥିତିରେ କ'ଣ ବା ପ୍ରତିକ୍ରିୟା ଜଣାଇଥାନ୍ତା ? ମତେ ଯେଣତେଣ ସେ ଡ଼ବା ଭିତରକୁ ଠେଲି ପୂରାଇଦେଲା । ସେ ନିଜେ ବି ଉଠିଆସିଲା । ଗାଡ଼ି ଭିତରେ ବହୁତ ଭିଡ଼ ହୋଇଥାଏ । ତା' ଭିତରେ ଆମକୁ ମୁଣ୍ଡ ଗୁଞ୍ଜିବାକୁ ଜାଗା ଟିକେ ମିଳିଗଲା ।

ଆମର ଚାରିପାଖରେ ଅନେକ ଲୋକ ଡ଼ରି ମରି ଠିଆ ହୋଇଥାନ୍ତି । ରେଳଠାରୁ ଅଳ୍ପ ଦୂରରେ ତଥାପି ଠିଆ ହୋଇଥାନ୍ତି ମହଦର୍ ଇକ୍‌ବାଲ୍ । ତାଙ୍କ ମୁହଁ ଏବେ ବି ନୀଳ ଓ ଭୟଙ୍କର ଜଣାପଡୁଥାଏ । ଅଳ୍ପ ସମୟ ତଳେ ଆମମାନଙ୍କ ପାଇଁ ଏହା ଏପରି ଚହଟିବାକୁ ଆରମ୍ଭ କରିଥିଲା । ସେ ବାରମ୍ବାର ଆମ ଆଡ଼କୁ ମୁଥା ହଲାଉଥାନ୍ତି । ଗରଗର ହୋଇ ସେ କ'ଣ କହିଚାଲିଥାନ୍ତି ।

ହଠାତ୍ ପ୍ଲାଟଫର୍ମରେ ହଇଚଇ ଆରମ୍ଭ ହୋଇଗଲା । ଏଠାରେ ବି ଦଙ୍ଗା ! ଗାଡ଼ି ଛାଡ଼ିବା ଭିତରେ ବେଶ୍ କିଛି ଲୋକ ଜୀବନ ହରାଇଲେ ।



ଅନେକେ ଖଣ୍ଡିଆ ଖାବରା ହୋଇଗଲେ । ସୌଭାଗ୍ୟକୁ ଆମେ ଆହତ ହେବାରୁ ବଞ୍ଚିଗଲୁ । କିନ୍ତୁ ଆମ ପାଇଁ ବି ଏକ ଦାରୁଣ ଆଘାତ ଥିଲା । ଏହା ଥିଲା ବାପାଙ୍କର ଭଙ୍ଗା ହୃଦୟ । ତାଙ୍କର ଭଙ୍ଗା ଚଷମା କାଚ ପରି ଏହାର ଆଉ ମରାମତିର ସମ୍ଭାବନା ବି ନ ଥିଲା ।

ଅମୃତସରରେ ପହଞ୍ଚିବା ଭିତରେ ଦଙ୍ଗା-ଆହତ ଲୋକଙ୍କ ଭିତରୁ କେତେ ଜଣ ଯେ ଗାଡ଼ି ଭିତରେ ଟଳି ପଡ଼ିଥିବେ, ତାହା ଆମେ ଜାଣିପାରି ନଥିଲୁ । ଅନେକେ ହୁଏତ ଦାରୁଣ ମାନସିକ ଧକ୍‌କାରେ ହିଁ ଆଖି ମୁଜି ଦେଇଥିବେ ।

ଗାଡ଼ି ଭିତରେ ସୋରିଷଟିଏ ବି ପକାଇବାକୁ ଜାଗା ନଥିଲା, ଆମେ ଅଣନିଶ୍ୱାସୀ ହୋଇ ପଡୁଥାଉ । ମୁଁ ବାରମ୍ବାର ବାପାଙ୍କ ମୁହଁକୁ ଅନାଉ ଥାଏ । ତାଙ୍କ ମୁହଁରେ ଭାବ ବଦଳି ଚାଲିଥାଏ । ମଝି ମଝିରେ ତାଙ୍କୁ ଦେଖି ମୁଁ ଚମକି ପଡୁଥାଏ । ସେ ସେତେବେଳକୁ ପଥର ପାଲଟି ଯାଇଥାନ୍ତି । ମତେ ଲାଗୁଥାଏ, ଯେପରି ସେ ନିଜକୁ ନିଃସ୍ୱ, ନିଃସଙ୍ଗ ଓ ପ୍ରତ୍ୟାଖ୍ୟାତ ମନେ କରୁଥାନ୍ତି । ବାରମ୍ବାର ସେ ଆଖି ବୁଜୁଥାନ୍ତି ଓ ଛେପ ଢୋକୁଥାନ୍ତି ।

ମା' ଭିତରେ ଭିତରେ ଚିଡ଼ି ଉଠୁଥାଏ । ସେ ଅଭିମାନ ଓ ରାଗମିଶା ଗଳାରେ ଜୋରରେ କହୁଥାଏ, ''ତମେ କ'ଣ ଆଉ ଆଶା କରୁଥିଲ ଯେ, ସେ ତୁମକୁ କୋଳେଇ ନେଇଥାନ୍ତେ ?''

ବାପା କିଛି କହୁ ନଥାନ୍ତି । ଭଙ୍ଗା ଚଷମା କାଚ ତଳୁ ତାଙ୍କର ଢଳ ଢଳ ଆଖି ହଳକ ବଡ଼ କରୁଣ, ବିମର୍ଷ ଓ ଏକଲା ଦିଶୁଥାଏ ।

ଏଥର ବାପା ମୁହଁ ଖୋଲିଲେ । ''ମୁଁ ଜାଣେ, ପରିସ୍ଥିତି ଅତି ଖରାପ ଥିଲା । ସେ ଚାହିଁଲେ ବି ସହାନୁଭୂତିରେ ସେ ତା'ର ହାତ ଦୁଇଟା ମୋ ଆଡ଼କୁ ବଢ଼ାଇ ପାରି ନଥାନ୍ତା । କିନ୍ତୁ ସେ କ'ଣ ଟିକେ ଶାନ୍ତିରେ ଆମକୁ ବିଦାୟ ଦେଇ ପାରି ନଥାନ୍ତା ? ଏପରି କୃତଘ୍ନ ଭାବରେ ବ୍ୟବହାର ଦେଖାଇବା



କ'ଣ ଦରକାର ଥିଲା ? ମତେ ଚୋର ତସ୍କର କହି ମାଡ଼ ମାରିବାକୁ ବି ସେ ପଛାଇଲା ନାହିଁ ! ସେ କ'ଣ ମୋତେ ଆକ୍ରମଣ କରିବାକୁ ଆସିଥିଲା ?''

''ସେ ନିଜକୁ ଜଣେ ସଚ୍ଚା ମୁସଲମାନ୍ ବୋଲି ଜଣାଇବାକୁ ଆସିଥିଲା ।'' ମା କହିଲେ, ''ସଚ୍ଚା ମୁସଲମାନମାନେ ଆମକୁ ଘୃଣା କରନ୍ତି ।''

''ମୁଁ ବୁଝୁଛି । ହେଲେ ସେ କ'ଣ ଅନ୍ୟମାନଙ୍କ ପରି ଥିଲା ? ସେ ତାଙ୍କଠୁ ଅଲଗା ନଥିଲା ? ସେ ଖାଲି ସେମିତି ଦୂରରେ ଠିଆ ହୋଇ ଚାହିଁ ଦେଇ ଚାଲି ଯାଇ ପାରିଥାନ୍ତା । କିନ୍ତୁ ସେ ସେପରି କଲା ନାହିଁ । ଘୃଣା ଓ ଅହଂକାରରେ ଅନ୍ୟମାନଙ୍କ ପରି ସେ ବି ପାଗଳ ହୋଇଯାଇଥିଲା ।'' ବାପା ଦୀର୍ଘଶ୍ୱାସ ନେଲେ ।

କିଛି ସମୟ ବିତିଗଲା । ଏଥର ସେ ଶାନ୍ତ ଓ ସଫା ସ୍ୱରରେ କହିଲେ, ''ଏହା ଆମର ଭାଗ୍ୟ । ଯାହା ଘଟିବାକୁ ଥିଲା ଘଟିଗଲା । ଏଥିପାଇଁ କାହାକୁ କିଛି ଦୋଷ ଦେବାର ନାହିଁ । ସେ ମୋତେ ଏପରି ଶେଷ ମୁହୂର୍ତ୍ତରେ

ସଙ୍ଗୋଳିବାକୁ ଆସୁ ତା' ମୁଁ ଚାହୁଁ ନଥିଲି । ଯଦି ଆସିଲା ଖାଲି ସେଇ ଦୂରରେ ଥାଇ ପଲକଟିଏ ପାଇଁ ମୋତେ ଚାହିଁ ଦେଇଥାନ୍ତା । ସାରା ଜୀବନ ଆମେ ଅଲଗା ରହିପାରୁ । କିନ୍ତୁ ମନ ଏକାଠି ରହିବ । ଏଇ ବିଶ୍ୱାସ ରଖି ମୁଁ ବାକି ଜୀବନ ଶାନ୍ତିରେ କଟେଇ ଦେଇଥାନ୍ତି । ଜାଣିଥାନ୍ତି ଯେ, ମଣିଷ ଭିତରେ ଅନେକ ଅସଲ 'ମଣିଷ' ଅଛନ୍ତି, ଯେମିତି ମହଦର୍ ଇକ୍‌ବାଲ୍ ।''

ଶେଷ ଆଡ଼କୁ ବାପାଙ୍କ ସ୍ୱର ଭାଙ୍ଗି ପଡ଼ିଥିଲା । ସେ ଆଉ କିଛି କହି ପାରିଲେ ନାହିଁ । ଆଖିବନ୍ଦ କରି, ଦି' ହାତ ପାପୁଲିରେ ମୁହଁ ସେ ଲୁଚାଇଦେଲେ ।

ବାପାଙ୍କୁ ଦମ୍ଭ ଦେବାକୁ ମା' କହୁଥାଏ ! ''ସବୁ ସମୟରେ ଭଲ ମଣିଷ ଅଛନ୍ତି । ଖରାପ ମଣିଷ ବି ଅଛନ୍ତି । କାହାର କଥା ମନେ ପକାଇ ନିଜକୁ କଷ୍ଟ ଦେଇ କି ଲାଭ ?'' ମତେ କିନ୍ତୁ ଲାଗୁଥିଲା, ଏହା ମା' ମନର କଥା ନଥିଲା । ମହଦର୍ ଇକ୍‌ବାଲ୍‌ଙ୍କ ଭଳି ଲୋକ......ତାଙ୍କୁ ଟିକିଏ ଘୃଣା



ଏପରି ଖଣ୍ଡ ଖଣ୍ଡ କରି ଭାଙ୍ଗି ଦେଲା । ତେବେ ଅନ୍ୟ ଯେ କୌଣସି ଲୋକ ଅଚିରେ ଧ୍ୱଂସ ହୋଇଯିବ । ଏମିତି ହେଲେ ଦୁନିଆରେ ଖଣ୍ଡେ ଜାଗା କେଉଁଠି ରହିବ ? ଏହି ମହଦର୍ ଇକ୍‌ବାଲ୍‌ମାନଙ୍କୁ ଦୂରେଇ ଦେଇ ମଣିଷ ତ ନିଶ୍ଚିନ୍ତରେ ରହିପାରିବ ନାହିଁ ।

ବାପା ଗାଡ଼ିର କାନ୍ଥ ଆଡ଼କୁ ମୁହଁ ବୁଲାଇଲେ । ନୀରବତାରେ କିଛି ସମୟ ବିତିଗଲା । ଏଥର ଆମକୁ ବୁଝାଇବା ଭଙ୍ଗୀରେ ସେ କିଛି କହିବାକୁ ଆରମ୍ଭ କଲେ । ସେ ବେଶ୍ ଶାନ୍ତ ଓ ସମାହିତ ସ୍ୱରରେ କହିଲେ, ''ମଣିଷ ଠାରୁ କିଛି ପ୍ରତ୍ୟାଶା କରିବା ବୃଥା । ଇକ୍‌ବାଲ୍ ପାଇଁ ଆଉ ମନ ବ୍ୟସ୍ତ କରି କିଛି ଲାଭ ନାହିଁ । ସଂସାରରେ କିଏ ବା କାହାର ଖବର ରଖୁଛି ! ଈଶ୍ୱର ବୋଧେ ଏ ସବୁକୁ ଖାତିର କରନ୍ତି ନାହିଁ ।''

ମଣିଷର ସୁଖ ଦୁଃଖରେ ମହତ୍ତର ଉଦ୍ଦେଶ୍ୟ କ'ଣ ଈଶ୍ୱରପ୍ରାପ୍ତି ନୁହେଁ ? ଈଶ୍ୱର କ'ଣ ପ୍ରାଣୀର ଅସହାୟତା ଓ ଅସନ୍ତୋଷକୁ ବୁଝିପାରନ୍ତି ନାହିଁ ? ତା' ହେଲେ, ସେ କାହିଁକି ବାରମ୍ବାର ଏ ଧରାରେ ଜନ୍ମ ନିଅନ୍ତି ? ପତିତଙ୍କୁ ଉଦ୍ଧାର କରି ଧର୍ମ ପ୍ରତିଷ୍ଠା କରିବା ପାଇଁ ନୁହେଁ ? ଭଗବାନ୍ ଯୀଶୁ କାହିଁକି ସାଧାରଣ ମଣିଷଙ୍କ ମେଳରେ ରହି ଏତେ ଲାଞ୍ଛନା ଓ ପୀଡ଼ା ସହିଥିଲେ ?

ତରୁଣ ଗୌତମ କାହିଁକି ଲୋଭନୀୟ ସଂସାର ଛାଡ଼ି ନିର୍ବାଣ ପାଇଁ କଠିନ ତପସ୍ୟାରେ ଲାଗି ପଡ଼ିଲେ ? ବୁଦ୍ଧତ୍ୱ ପାଇବା ପରେ ସେ ପୁଣି କାହିଁକି ଫେରିଆସିଲେ, ସେହି ସାଧାରଣ ମଣିଷଙ୍କ ପାଖକୁ ଆଶା, ଆଲୋକ ଓ ମୁକ୍ତିର ମାର୍ଗ ଧରି ? ଈଶ୍ୱର ମଣିଷକୁ ତାଙ୍କର ଏକ ମହନୀୟ ସୃଷ୍ଟି ରୂପେ ଗଢ଼ିଛନ୍ତି । ମଣିଷଠାରୁ ଏପରି କିଛିଟା ପ୍ରତ୍ୟାଶା ରଖିବାରେ ଭୁଲଟା କେଉଁଠି ?

ମୋର ମନେହେଲା, ବାପାଙ୍କ ପାଇଁ ମୁଁ କିଛି କରିପାରିବି । ମୋର ଯାହାକିଛି ଈଶ୍ୱର ବିଶ୍ୱାସ ବଳରେ ମୁଁ ବାପାଙ୍କର ଆତ୍ମବିଶ୍ୱାସ ଫେରାଇ

ଆଣିବି । ମଣିଷ ପ୍ରତି ତାଙ୍କର ବିଶ୍ୱାସ ବଦଳି ଚାଲିଥିଲା । ମୁଁ ଏହାକୁ ପୁଣି ଆଗ ଅବସ୍ଥାକୁ ହୁଏତ ବଦଳାଇ ଦେଇପାରିବି । ଏହା ମନରେ ରଖି ମୁଁ ଈଶ୍ୱରଙ୍କ ପ୍ରତି ମୋର ଗଭୀର ପ୍ରଣତି ଜଣାଇଲି । ଏଥର ବାପାଙ୍କ ମୁହଁକୁ ଚାହିଁଲି ।

ସେ ବଡ଼ କରୁଣ ଦିଶୁଥିଲେ । ତାଙ୍କ ଆଖିରୁ ଦୁଇଧାର ଲୁହ ବହି ଯାଉଥିଲା । ଅନେକ ସମୟ ଧରି ତାଙ୍କର ମାନସିକ ଆନ୍ଦୋଳନ ଲାଗି ରହିଥିଲା । ଝାଳମିଶା ଲୁହଧାର ଦୁଇଟି ଅବସାଦର ଜଳଧାର ପରି ଦିଶୁଥିଲା । ଚାରିପାଖରେ ଲୋକ ଖୁନ୍ଦି ହୋଇ ରହିଥାନ୍ତି । ପାଇଜାମା ପକେଟ୍‌ରୁ ରୁମାଲଟି ବାହାର କରିବା ତାଙ୍କ ପାଇଁ ସମ୍ଭବପର ନଥିଲା । ଏପରି ଅନୁମାନ କରି ମୁଁ ମୋର କୁନି ହାତ ଦୁଇଟିକୁ ତାଙ୍କ କୁର୍ତ୍ତା ପକେଟରେ ପୂରାଇଲି ।

ହେଲେ ଖାଲି ରୁମାଲଟି ବାହାରିଲା ନାହିଁ । ଏଥି ସହିତ ବାହାରି ଆସିଲା ଆଉ କିଛି ଗୋଟିଏ ଜିନିଷ । ଏହା ଥିଲା ମୋଡ଼ି ମୋଡ଼ି ହୋଇ



ଯାଇଥିବା କାଗଜ ପୁଡ଼ିଆଟିଏ । ମୋ ହାତରୁ ଏହା ଖସିଗଲା । ବାପାଙ୍କର ଠିକ୍ କୋଳ ଉପରେ ପଡ଼ିଲା । ପଡ଼ିଲା ବେଳକୁ ମୋଡ଼ା କାଗଜଟି ଅଳପ ଖୋଲିଗଲା । ଏହା ଭିତରେ କିଛି କାଗଜ ଟଙ୍କା ଥିଲା ପରି ଦିଶିଲା ।

ମାଁ ସାଙ୍ଗେ ସାଙ୍ଗେ ଏହାକୁ ଢ଼ାଙ୍କି ପକାଇଲା । ଏପରି ଡ଼ରିବାର କାରଣ- କାଳେ କିଏ ଛଡ଼ାଇ ନେବ । ଏହା ଏକ ଆଶ୍ଚର୍ଯ୍ୟଜନକ ଘଟଣା ଥିଲା । ନିଃସ୍ୱ ହୋଇଗଲା ପରେ ପୁଣି ଏପରି ଧନ ପାଇବାଟା ଏକ ସ୍ୱପ୍ନ ପରି ଲାଗୁଥାଏ ।

ଆମେ ଏବେ ଶହ ଶହ ଅସହାୟ ଓ ନିଃସ୍ୱ ମଣିଷଙ୍କ ମେଳରେ । ଏ ପରିସ୍ଥିତିରେ ଆମ ପାଖରେ ଟଙ୍କା ଅଛି ଜଣାଇବା ବି ଅତି ଅସାମାଜିକ କଥା ହେବ । ପୁଡ଼ିଆରେ ଥିବା କାଗଜଟିରେ କ'ଣ ଲେଖା ହୋଇଥିଲା । ବାପା ସେଇଟିକୁ ଉଠାଇନେଲେ । ତାଙ୍କ ହାତଦୁଇଟି ଆବେଗ ଓ ବିସ୍ମୟରେ ଥରୁଥାଏ । ସେ ବେଶ୍ ଆଗ୍ରହ ଭାବରେ ଏହାକୁ ଚାହୁଁଥିଲେ । ମନେ ହେଉଥିଲା ଯେପରି ସେ ଆଉ ଏକ ଗଭୀର ଧକ୍କାର ସାମନା କରି ପାରିବେ ନାହିଁ । ଏହା କ'ଣ ହୋଇପାରେ ? ଆମେ ବେଶ୍ ବ୍ୟଗ୍ର ଭାବରେ ବାପାଙ୍କ ମୁହଁକୁ ଅନେଇ ରହିଥାଉ ।

''ନା ! ଅସମ୍ଭବ କଥା ! ମୋ ପାଖରେ ତ କାଣି କଉଡ଼ିଟାଏ ବି ନଥିଲା । ଏତେ ଟଙ୍କା କୁଆଡୁ ଆସିଲା ?'' ବିସ୍ମୟ ଅଭିଭୂତ ବାପାଙ୍କ ପାଟିରୁ ବାହାରି ପଡ଼ିଲା । ମୁଁ ବାପାଙ୍କ ପାଖକୁ ଟିକେ ଲାଗିଗଲି । ତାଙ୍କ କାନ୍ଧକୁ ମୁହଁ ଲଗାଇ ଧୀର ଭାବରେ କହିଲି, '' ମୁଁ ଜାଣିଛି । ବାପା ତମର କ'ଣ ମନେ ନାହିଁ? ସେ ନିଜେ ପରା ତୁମ ପକେଟରେ ହାତ ପୂରାଇଥିଲେ ?''

''ମହଦର୍ ଇକ୍‌ବଲ୍ !'' ବାପା ଦୀର୍ଘଶ୍ୱାସ ନେଲେ । ସେ ଥରକୁ ଥର କାଗଜ ଟଙ୍କାଗୁଡ଼ିକୁ ଅନାଉଥାନ୍ତି ଓ କ'ଣ ଚିନ୍ତା କରୁଥାନ୍ତି । ମୁଁ ସ୍ୱଷ୍ଟ ଭାବରେ ଅନୁମାନ କରି ପାରୁଥାଏ । ସେ କିପରି ନିଜକୁ ଦୋଷୀ ଦୋଷୀ ମନେ କରୁଥାନ୍ତି । ଭିତରେ ଭିତରେ ସେ ସନ୍ତୁଳି ହେଉଥାନ୍ତି ।

''ଦେଖ ତ, କେତେ ଟଙ୍କା'', ମା' ତରବରରେ ଚୁପ୍ କରି କହିଲା । ବାପା ଟଙ୍କା ବିଡ଼ାଟିକୁ ଧରି ଚୁପଚାପ୍ ଗଣିବାରେ ଲାଗିଲେ । ଥରେ ଗଣିସାରି ପୁଣି ଗଣିବାରେ ଲାଗିପଡ଼ିଲେ । ବୋଧହୁଏ ସେ କୌଣସି ଠିକ୍ ସିଦ୍ଧାନ୍ତରେ ପହଞ୍ଚି ପାରୁ ନଥାନ୍ତି । କାଗଜ ନୋଟ୍‌ଗୁଡ଼ିକ ଯେପରି ତାଙ୍କୁ ବାରମ୍ବାର ହରକତ କରୁଥାନ୍ତି । ସେ କୌଣସି ସିଦ୍ଧାନ୍ତରେ ପହଞ୍ଚି ପାରୁ ନଥାନ୍ତି । ସଠିକ୍ ଭାବରେ ସେ ସତରେ ଗଣି ପାରୁ ନଥାନ୍ତି । କେତେବେଳେ ନୋଟ୍ କମ୍ ହୋଇଯାଉଥାଏ । କେତେବେଳେ ପୁଣି ଅଧିକା ବି ହୋଇଯାଉଥାଏ । ବୋଧହୁଏ ସେ ଏହାକୁ ସତ ରୂପେ ମାନି ପାରୁ ନଥାନ୍ତି ।

ତାଙ୍କ ମନ ଭିତରେ ଏକ ଗଭୀର ଓ ଅଜଣା ଅଭାବବୋଧ ଗୁଞ୍ଜରି ଉଠୁଥାଏ । ଈଶ୍ୱରଙ୍କ ପ୍ରତି ତାଙ୍କର ବିଶ୍ୱାସ ହଠାତ୍ ପୁଣି ବଢ଼ି ଯାଉଥାଏ ! ଏହି ସତ୍ୟକୁ ଉପଲବ୍ଧି କରି ଜୀବନ ପ୍ରତି ତାଙ୍କର ଆଶା ବିଶ୍ୱାସ ପୁଣି ବଢ଼ି ଯାଉଥାଏ ।

ଛୋଟ କାଗଜ ଟୁକୁଡ଼ାଟିରେ ଲେଖାଥିଲା :

''ମତେ କ୍ଷମା କରିବ । ତମ ପାଖରେ ଏତକ ପହଞ୍ଚାଇବା ଲାଗି ମୁଁ ଆଉ କୌଣସି ରାସ୍ତା ଦେଖି ପାଇଲି ନାହିଁ । ଯଦି ଆମେ ଦୁହେଁ ଆଗର ବନ୍ଧୁ ପରି ବ୍ୟବହାର ଦେଖାଇଥାନ୍ତେ, ତେବେ ଜୀବନ ଫେରି ପାଇ ନ ଥାନ୍ତେ । ମୋତେ ଦୟା କରିବ । ଏଇ ଟଙ୍କା କେତୋଟି ମୋ ଅପେକ୍ଷା ଆଜି ତମ କାମରେ ବେଶୀ ଆସିବ । ସାରା ଜୀବନ ମତେ ବନ୍ଧୁ ଭାବରେ ମନେ ରଖିପାରିଲେ କୃତାର୍ଥ ହେବି । ଦୁଃଖ ଏତିକି ତମ ପରି ଭଲ ମଣିଷଟିଏ ହୁଏତ ଆଉ ଜୀବନରେ ପାଇବି ନାହିଁ''-ଇକ୍‌ବାଲ୍

ସେଇ ପୁଡ଼ିଆଟିରେ ଆମ ପାଇଁ ଥିଲା ପୂରା ପନ୍ଦର ଶହ ଟଙ୍କା- ମହମ୍ମଦର୍ ଇକ୍‌ବାଲ୍‌ଙ୍କର ଜୀବନଯାକର ସଞ୍ଚୟ ।



# ସଭିଏଁ ଢ଼ିଇଁ ଶିଖିବା

ଆମେ ସଭିଏଁ ଢ଼ିଇଁ ଶିଖିବା
ଆମ ଆନନ୍ଦ ବାଣ୍ଟି ଚାଲିବା
ଚାଲ ରଚି ଯିବା ନୂଆ ଧରା
ଏଠି ହସିବ ଖୁସିର ଧାରା
ଘରେ ଘରେ ତ ଦୀପ ଜାଳିବା
ଆମ ଆନନ୍ଦ ବାଣ୍ଟି ଚାଲିବା
ଆମେ ସଭିଏଁ ........(୦)
କେତେ ଖୁସି ଏଇ ଦୁନିଆରେ
ତୋଳି ଚାଲିବା ଦୁଇ ହାତରେ
ଆସ ଖୁସିର ଫସଲ କାଟିବା
ଆମ ଆନନ୍ଦ ବାଣ୍ଟି ଚାଲିବା
ଆମେ ସଭିଏଁ ............(୧)
ସବୁ ହାତରେ କଡ଼ି ହସୁଛି
ସବୁ ଓଠରେ ହସ ଫୁଟିଛି
ଆସ ସିନିହ ଗୀତ ଗାଇବା
ଆମ ଆନନ୍ଦ ବାଣ୍ଟି ଚାଲିବା
ଆମେ ସଭିଏଁ.............(୨)
କେତେ ବଢ଼ିଆ ଏଇ କାହାଣୀ
ଆମ ଜୀବନର ଏ କାହାଣୀ
ପ୍ରତି କ୍ଷଣକୁ ମୋତି ବନାଇ
ଆମ ଆନନ୍ଦ ବାଣ୍ଟି ଚାଲିବା
ଆମେ ସଭିଏଁ ............(୩)